# ଆଶା-ସ୍ୱପ୍ନ ।

ସୁରଙ୍ଗୀ ଅଧୀଶ୍ୱର

ଶ୍ରୀ ଚନ୍ଦ୍ରଚୂଡ଼ାମଣି ରାଜା ବୃନ୍ଦାବନ ଜଗଦ୍ଦେବ ।

# ଆଶା-ସ୍ୱପ୍ନ ।

ସୁରଙ୍ଗୀ ଅଧୀଶ୍ୱର

ଶ୍ରୀ ଚନ୍ଦ୍ରଚୂଡ଼ାମଣି ରାଜା ହରିଚନ୍ଦନ ଜଗଦେବ

ବିରଚିତ ।

ପ୍ରଥମ ସଂସ୍କରଣ ।

PRINTED BY V. KAR.

THE UTKAL SAHITYA PRESS,

Cuttack.

1919

ମୂଲ୍ୟ ଛଅ ଅଣା ।

# ଆଶା-ସ୍ୱପ୍ନ ।

ପଥକ୍ଳାନ୍ତ ପଥିକର କେବେ ଯାତ୍ରା ଶେଷ,
କେବେ ହେବ ଅବସାନ ଦୁଃଖ କଷ୍ଟ କ୍ଳେଶ ।

କେବେ ଏ ଜୀବନବ୍ରତ ହେବ ଉଦ୍‌ଯାପିତ,
ପଞ୍ଚଭୂତ ପଞ୍ଚଭୂତେ ହେବ ସମିଶ୍ରିତ ।

ବାସନା କାମନା-ବାୟୁ କେବେ ହେବ ସ୍ଥିର,
ହୃଦୟ-ସାଗର ମୋର କେବେ ହେବ ଧୀର ।

କେବେ ବା ପଞ୍ଜରଦ୍ୱାର ଫେଡ଼ି ଫୁଙ୍କମନେ,
ଯେ ବନ ପକ୍ଷୀ ମୁଁ, ଉଡ଼ି ଯିବ ସେହି ବନେ ।

ସନ୍ତର ନୈରାଶ୍ୟ-ସ୍ରୋତେ ପଡ଼ିଲଣି ଥକା,
କେତେ କାଳ ହୋଇଥିବ ଭ୍ରାନ୍ତିର ଗହକା ।

କର୍ମକୋଲାହଳମୟ ଭବ-ରଙ୍ଗସ୍ଥଳେ
ଯାହା ଦେଖିବାକୁ ଆଉ ମାନସ ନ ବଳେ ।

କାହିଁକି କେଜାଣି ଆତ୍ମା କରେ ହାହାକାର,
ଶାନ୍ତ କଲେ ଶାନ୍ତ ନୋହି କରେ ଅତ୍ୟାଚାର ।

ଯେଉଁ ଆଡ଼େ ଦେଖେଁ ହାସ୍ୟ ମଧ୍ୟରେ କ୍ରନ୍ଦନ,
ଆଲୋକ ମଧ୍ୟରେ ଦେଖେଁ ଅନ୍ଧକାର ଘନ ।

ଧରଣୀ ଗଗନ ଦିକ୍ ସକଳ ଅନନ୍ତ,
ଅନନ୍ତ ମଧ୍ୟରେ ବୁଡ଼ି ନ ପାଏଁ ମୁଁ ଅନ୍ତ ।

ଅନନ୍ତତ୍ୱ-ଉଛଭତି କର ଅତିକ୍ରମ
ଆତ୍ମପ୍ରକାଶରେ ଆତ୍ମା ଏକାନ୍ତ ଅକ୍ଷମ ।

ସୁଖ ସୁଖ ବୋଲି ସଦା ଉଠୁଛି ଚିତ୍କାର,
ସୁଖ ନାମେ ଅଭିହିତ ଦୁଃଖର ବିକାର ।

ସାରରୂପେ ଅଭ୍ରପେ ସେ ଅସାର ସର୍ବଥା,
ସୁଖ ଭୋଗ ଅଶ୍ୱତ୍ଥାମା ଦୁଗ୍ଧପାନ ଯଥା । (୧)

ସଂସାର ଯା ନାମ ସେ ତ ମାୟାର ଆନାୟ (୨)
ପଡ଼ି ତହିଁ ଛଟପଟ ଜୀବ ମୀନ ପ୍ରାୟ ।

କୁହୁକମୀ ଆଶା କେତେ ଦେଖାଏ କୁହୁକ,
ଜନ ମନ ଭୁଲାଣିଆ ବଚନ କୌତୁକ ।

ଯାମିନୀ ବାର୍ଦ୍ଧକ୍ୟେ ଦିନେ ଦେଖିଲି ସ୍ୱପନ,
ଜ୍ୟୋତିଃରୂପା ନାରୀ ଏକ ବିଜେ ମୋ ସଦନେ ।

ଅଦେହୀ ସେ ମାତ୍ର ଦିଶେ ସୁନ୍ଦରୁ ସୁନ୍ଦର,
ସୌନ୍ଦର୍ଯ୍ୟ ପ୍ରଭାରେ ହେଲା ଆଗାର ଭାସ୍ୱର ।

---

(୧) ବାଲ୍ୟାବସ୍ଥାରେ ଅଶ୍ୱତ୍ଥାମା ଦୁଗ୍ଧ ଜ୍ଞାନରେ ପିଠଉପାଣି ପିଉଥିଲେ । (୨) ମାଛଧରା ଜାଲ ।

ଜ୍ୟୋତିଃ-ବସନରେ ଢଙ୍କା ଜ୍ୟୋତିଃ-ଅବୟବ,
ଜ୍ୟୋତିର ଭୂଷଣ ପୃଜେ ଜ୍ୟୋତିର ଉତ୍ସବ ।

ସ୍ନେହବୋଳା ହାସ୍ୟମୁଖେ ସମ୍ବୋଧି ମଧୁରେ
ଭାଷିଲେ, ରେ ବତ୍ସ, ଝୁରୁ କାହିଁ ତୁ ଆତୁରେ ।

ଅନ୍ତର୍ଦ୍ଧେ ତ୍ରୈଲୋକ୍ୟ ଚନ୍ଦ୍ର ମୋହୋର ଏ ମୂର୍ତ୍ତି,
ମୁମୂର୍ଷୁ ପ୍ରାଣରେ ଆଣେ ଯନ୍ତ୍ରଣା ବିସ୍ମୃତି ।

ସେନ ମୋ ଅଶ୍ରୟ ହେବ ସୁସ୍ଥ ତୋର ମନ,
ଧୋଇଲ ଅବରୁଦ୍ଧା ମୁହିଁ ଦେଖି ତୋ କଷଣ ।

ସମୋହ-ମୁକୁରେ ମୋର ଦେଖିଲେ ତୁ ମୁଖ,
ମୁହୂର୍ତ୍ତକେ ବିସୋରିବୁ ସବୁ ଶୋକ ଦୁଃଖ ।

ଆସ ମୋ ସଙ୍ଗରେ କିଛୁ ନ ବିଚାର ଆନ,
ଦେଖାଇବି ତୋତେ ମୋର ମୋହନ ଉଦ୍ୟାନ ।

ଶୁଣି ଅଶାମିଶା ଭାଷା ହୋଇ ମୁଁ ଅଶାସ୍ୱୀ
କଲି ତହୁଁ କାର୍ଯ୍ୟ ତାଙ୍କ ଆଜ୍ଞା ଅନୁଯାୟୀ ।

ପୁଣିଷା ପଶ୍ଚାତେ ଗ୍ଲେ ଛାୟା ଯେପରି,
ତେପନ ତାଙ୍କର କଲି ମୁଁ ଅନୁଗମନ ।

କଣ୍ଟ ଷଣ ଅନ୍ତେ ଖଣ୍ଡେ ସ୍ୱର୍ଣ୍ଣଭୂମି ପରେ
ମିଳିଲୁଁ ଉଭୟେ ଏକ ସ୍ୱର୍ଣ୍ଣ ଉଦ୍ୟାନରେ ।

ସୁବର୍ଣ୍ଣର ବୃକ୍ଷେ ତହିଁ ଦଶନ୍ତ ଉଜ୍ଜ୍ୱଳ,
ସ୍ୱର୍ଣ୍ଣ ବେଦୀରେ ଶୋଭେ ପ୍ରଭ ବୃକ୍ଷତଳ ।

ସ୍ୱର୍ଣ୍ଣ ମଣ୍ଡାରେ ପଞ୍ଚେ ମାତ ସ୍ୱର୍ଣ୍ଣଲତା
କହୁଛି ନୀରବେ ପାନ୍ଥେ ହାସ୍ୟୋଜ୍ଜ୍ୱଳ କଥା ।

କୁଞ୍ଜେ କୁଞ୍ଜେ ଖେଳୁଛନ୍ତି ସ୍ୱର୍ଣ୍ଣ ବିହଙ୍ଗେ,
କ୍ରୀଡ଼ୁଛନ୍ତି ରହିଣୁଙ୍ଗ କନକ କୁରଙ୍ଗେ ।

ଅମୃତ ମାଧୁରୀ ଯବେ ହୁଏ ଢଳଢଳ,
ଅକାଳେ କୋଇଲି ରବେ ପୂର୍ଣ୍ଣ ବନସ୍ଥଳ ।

ଶୋଭିରେ ନନ୍ଦନବନେ ଅର୍ପେ ଅପମାନ,
ହରନଏ କ୍ଷୁଧା ତୃଷା ଚନ୍ତା ଯେ ଉଦ୍ୟାନ ।

ମାତ୍ର ଏକ ମହାଶ୍ଚର୍ଯ୍ୟ ଦେଖିଲି ସେଠାରେ,
ଫୁଲ ଫୁଟେ ନାହିଁ କେଉଁ ବୃକ୍ଷ ବା ଲତାରେ ।

କଢ଼ିବେଳୁ ଶୁଖିଯାଇ ଝଡ଼ିପଡ଼େ ତଳେ,
ତରୁ ଲତା ଭରି ଖାଲି ବହନ୍ତି ବଫଳେ ।

ଫୁଟୋନ୍ମୁଖ ହୁଏ ଯଦି ଦୈବେ କଢ଼ି ଏକ,
ସେହି ଦଣ୍ଡେ ଦୁଷ୍ଟ କୀଟେ କାଟନ୍ତି ତା ବେକ ।

ମଧୁପାନ ଆଶେ ଅଳି ଉଡ଼ି ଉଡ଼ି ବନେ
ଫେରିଯାଏ ଦୀର୍ଘଶ୍ୱାସ ତେଜି ଶୂନ୍ୟମନେ ।

ପାରିଧ ଆଶାରେ ତହିଁ ଭ୍ରମନ୍ତି କେବେତେ,
କେହି ଜାଲ କେହି ଧନୁଶର ଧରି ହାତେ ।

ଭେଦୁଛି ଶିକାର ଦେହେ ଅସ୍ତ୍ର ଯଥା ତଥା,
ମାତ୍ର ସେ ନ ମରେ ତହିଁ, କି ଅଦ୍ଭୁତ କଥା !

ଜାଲେ ବଦ୍ଧ ହେଉଛନ୍ତି ବିହଙ୍ଗମଗୁଡ଼,
ଧରିବାବେଳକୁ ଖରେ ଯାଉଛନ୍ତି ଉଡ଼ି ।

ଦେଖି ଦେଖି ଏହି ଦୃଶ୍ୟ ମୁଗ୍ଧ ସ୍ତବ୍ଧ ମନେ
ଉପସ୍ଥିତ ହେଲି ଯାଇ ଅନ୍ୟ ଉପବନେ ।

ସେ ବନେ ହୀରକ ବୃକ୍ଷେ ପଦ୍ମରାଗ ଡାଳ,
ବୈଦୂର୍ଯ୍ୟର ପତ୍ର, ଶିରି ମୁକୁତା ପ୍ରବାଳ ।

ଚନ୍ଦ୍ରାଉନ୍ଟି ଜ୍ୟୋତ୍ସ୍ନା ତାର ବହୁଗୁଣ ପ୍ରଭା,
ଅନୁକରେ କି ସେ କୋଟି ଇନ୍ଦ୍ରଧନୁ ଶୋଭା ।

ଉଦ୍ୟାନରୁ ଶୋଭାଧାର ପଡ଼ୁଛୁ ନଗିଡ଼,
ଶୋଭା-ସ୍ୱପ୍ନ-ରାଜ୍ୟ ପଣ୍ଡ ପଡ଼ୁଛୁ ସେ ଶୁଭ ।

ବହୁ ରଙ୍ଗବର୍ଣ୍ଣ ଫୁଲ ଫୁଟିଛୁ ତହିଁରେ,
ମାବ ନାହିଁ ଭଲେ ମାବ ବାସନା କାହିଁରେ ।

ତୋଳନ୍ତି ବାଳକେ ଫୁଲ ବୁଲି ନାନାଠାବେ,
ଦଳି ଫିଙ୍ଗି ଦେଉଛନ୍ତି ବାସନା ଅଭାବେ ।

ବହୁଛୁ ଉଦ୍ୟାନକଣ୍ଠେ ଜ୍ୟୋତିଃ-ତରଙ୍ଗିଣୀ,
ହସୁଛୁ ତହିଁରେ ଭାସି କୋଟି କମଳିନୀ ।

ସନ୍ତରି ସ୍ୱର୍ଣ୍ଣ ହଂସେ ମାର ତହିଁ ଅଣ୍ଟ
ପୃଷ୍ଟର ନ ପାଇ ଭେକେ ହୋନ୍ତି ଛଟପଟ ।

ମୋହି ପାରେ ମନେ ବନ, ନେଇ ପାରେ କଣ୍ଠି,
ଅନ କଥା ଥାଉ ପାରେ ଦେବ ମନ କଣି ।

ହେଉ ପଛେ ବ୍ୟର୍ଥ ସ୍ୱପ୍ନ ହେଉ ପଛେ ମିଛ,
ମାତ୍ର ସେ ମଧୁର ଅତି ସୁନ୍ଦର ଅପିଚ ।

କେବଳ ସ୍ୱପନେ ନୁହେ ମଧୁର ତା ମୂର୍ତ୍ତି,
ଜାଗ୍ରତେ ମଧୁର ସୁଦ୍ଧା ତାର ଷଣ୍ମୂର୍ତ୍ତି ।

ତହୁଁ ପରେ ରୌପ୍ୟଭୂମି ଦର୍ଶେ ମନୋଲୋଭା,
ବସ୍ତ୍ରୀରଚ୍ଛୁ କେତେ ନେତ୍ରବଲୋଭନୀ ଶୋଭା ।

ମଧ୍ୟେ ବିରାଜିତ ଏକ ରଜତ ଉଦ୍ୟାନ,
ରଜତ ପାଦପେ ନମ୍ର ହୋଇ ଫଳବାନ ।

ଅଧିକାଂଶ ଫଳ କଞ୍ଚା ପକ୍ୱ ଅଳ୍ପମାତ୍ର,
ଚଢ଼ି ହୁଏ ନାହିଁ ବୃକ୍ଷେ ଖସିବ ତା ଗାତ୍ର ।

ଭୁଞ୍ଜୁଛନ୍ତି ପକ୍ୱ ଫଳ ଉଦ୍ୟାନ ଖେଚରେ,
ଝଡ଼ାଫଳ ଉପଭୋଗ୍ୟ ମାନବ ଭାଗ୍ୟରେ ।

ପାର୍ଶ୍ୱସ୍ଥ ପ୍ରାନ୍ତରେ ଖେଳେ ମୃଗତୃଷ୍ଣା ରଙ୍ଗେ,
ଜଳଭ୍ରମେ ପ୍ରଧାବନ୍ତି ତା ପଛେ କୁରଙ୍ଗେ ।

ଦେଖିଲି ଉଦ୍ୟାନେ ପୁଣି ଏକ ଅଘଟଣ,
ଏକ ବୃକ୍ଷ ଅନ ଫଳ କରନ୍ତି ଧାରଣ ।

ଅମ୍ରବୃକ୍ଷେ ଅମ୍ରାତକ ଅଛି ତହିଁ ଫଳ,
ବିଶାଳ ପଣସ ଫଳେ ଅନନ୍ତ କଦଳୀ ।

ଜାମୁଗଛେ ବରକୋଳି, ବେଲରେ କଇଥ,
ସବୁ ଗଛେ ଏହିପରି ଫଳ ବିପରୀତ ।

ଛଡ଼େ ମହାନରେ ଘନ ଗର୍ଜନ ନର୍ଘାତ,
କେତେବେଳେ ହୁଏ ନାହିଁ ମାବ ବଜ୍ରପାତ ।

ତହିଁ ପରେ ପ୍ରବେଶିଲି ଅନ୍ୟ ଉପବନେ,
ଅପକ୍ଷୁ ଭାରତ ମୁଖ ତା ଶୋଭା ବର୍ଣ୍ଣନେ ।

ନ ହୁଅନ୍ତ ଅସ୍ତ ତହିଁ କେବେ ଶଶଧର,
ସବୁବେଳେ ବନ ଶୁଭ୍ର-ଚନ୍ଦ୍ରିକା-ଭାସ୍ୱର ।

ସୁରଭି ବାସନ୍ତୀ ବାୟୁ ବହେ ଅବିରତ,
କୋକିଳ ପଞ୍ଚମସ୍ୱର ଆଳାପେ ନିରତ ।

ବସନ୍ତବିଭବେ ପୂର୍ଣ୍ଣ ସେ ରମ୍ୟ ଉଦ୍ୟାନ,
ବସନ୍ତରାଜାର ପ୍ରିୟ ବିଳାସ ଆସ୍ଥାନ ।

ଉଭା ରହି ବୃକ୍ଷେ ହୋଇ ଛନ୍ଦାଛନ୍ଦି ଡାଳ,
ମୂର୍ତ୍ତେ ମଣିମୁକ୍ତାଖଚୀ ଶୋଭେ ଆଲବାଲ ।

ନବ କିଶଲୟ ରୂପ ବିଦ୍ରୁମ ଭ୍ରମରେ
ବିଞ୍ଚନ୍ତି ପାଦପେ ସଦା ନୃପ-ଉତ୍ସବରେ ।

ଉଦ୍ୟାନର ଚତୁପାଶେ ସ୍ଫଟିକ ପ୍ରାଚୀର,
ବିବିଧ ଚିତ୍ରରେ ତାହା ଦିଶଇ ରୁଚିର ।

ଉଦ୍ୟାନର ତରୁଲତା ତହିଁ ପ୍ରତିଫଳ
ଦେଶେ ଅତି ଶୋଭିବନ ତପୋଦ୍ୟାନ ଭଳ ।

ଜ୍ୟୋତିଃ-ଲତା ନାଚୁଛନ୍ତି ଧୀର ବାତେ ଥିର,
ଉଦ୍ୟାନ ନୁହେ ସେ ଅହା ଅପ୍ସରାନଗରୀ ।

ଦେଖିଲି ସେଠାରେ ପୁଣି ଅପୂର୍ବ କୌତୁକ,
ରହିଛି ଉଦ୍ୟାନ ଶୂନ୍ୟେ ନ ଲାଗି ଭୂମିକ ।

ଉଦ୍ୟାନ ମଧ୍ୟରେ ସ୍ଥିତ ବିରାଟ ପର୍ବତ,
ମୁକୁଟ ଆକାରେ ଶୋଭେ ଶୃଙ୍ଗ ଶତ ଶତ ।

ବିରାଟ ଆକୃତି ତାର ଦେଖି ମାନେ ଭୟ,
ତାହା ତୁଳନାରେ ହେବ ଶିଶୁ ହିମାଳୟ ।

ବୃକ୍ଷଲତାପତ୍ରଶୂନ୍ୟ ସେହି ସାନୁମାନ,
ଅପାଦଶିଖର ବନା ହୋଇଛି ସୋପାନ ।

ବନ୍ଧୁରର ବଜଡ଼ତ ପ୍ରତ୍ତ ପଦବୀରେ,
ସେଭଲ ଉଜ୍ଜ୍ୱଳ ରତ୍ନ ନାହିଁ ପୃଥିବୀରେ ।

ଚଢ଼ିବା ସହଜ, ପାନ୍ଥ ଉଠେ ଧାଇଁ ଧାଇଁ,
ମାବ ଯେତେ ଚ୍ଛଲ ଚ୍ଛଲ ବାଟ ସରେ ନାହିଁ ।

ଘଣେ ଘଣେ ଭନ୍ନ ରୂପ ଧରେ ଗିରବର,
ଆକର୍ଷେ ସୁଷମା-ସୂବେ ନେବ ମାନବର ।

ଜଳ ନାହିଁ, ଫଳ ନାହିଁ, ବଳହୀନ ପାଦେ
ଭ୍ରମିଣ ନସ୍ତେଜ ପାନ୍ଥ ହୁଏ ଅବସାଦେ ।

ନାହିଁ ତହିଁ ବାୟୁ ବନା ଅପର ଆହାର୍ଯ୍ୟ,
କବା ତାହା ନଶ୍ୱାରଣୀ ଏକାଦଶୀ ରାଜ୍ୟ ।

ଶୋଭରେ ତ କେଉଁ କାଳେ ପୂରେ ନାହିଁ ପେଟ,
ଫେର ଅପେ ଦୁଃଖେ ପାନ୍ଥ କର ମଥା ହେଟ ।

ବହୁ ଲୋକ ଧରାଧର ହୋଇ ତହିଁ ହାତ
ହେଉଛନ୍ତି ସବୁବେଳେ ଖରେ ଯାତାୟାତ ।

ସେ ପର୍ବତଶିରୁ ବହି ଅସେ ଏକ ନଦୀ,
ହିମାଦ୍ରି ଶିଖରୁ ଯଥା ବହେ ବିଶ୍ୱନଦୀ ।

ଜଳ ନାହିଁ ସେ ନଦୀରେ କେବଳ କୁହୁଡ଼ି,
ଧୂମ୍ରସ୍ରୋତେ ଦୁଇ କୂଳ ଯାଇଅଛି ବୁଡ଼ି ।

ପୃଷ୍ଠ ହୋଇଛନ୍ତି ଜନେ ନଦୀ ବେଳା ପାଶେ,
ଡେଇଁପଡ଼ୁଛନ୍ତି କେତେ ସନ୍ତରଣ ଆଶେ ।

ଫଳେ ଭଗ୍ନ ହେଉଅଛି କାହିଁ ହସ୍ତ ପଦ,
ଫେର ଅସୁଛନ୍ତି ଭୁଞ୍ଜି ଦାରୁଣ ବିପଦ ।

ସମ୍ମୁଖେ ବିସ୍ତୃତ ରୁଦ୍ର ଅନନ୍ତ ସାଗର,
ଗର୍ଜୁଛି ଗମ୍ଭୀରେ ତୋଳି ବୀଚୀ ଭୟଙ୍କର ।

ନଭେ ବିହଙ୍ଗମ ପ୍ରାୟ ଅସଂଖ୍ୟ ବୋଇତ,
ଅଲକ୍ଷିତେ ଇତସ୍ତତଃ ହେଉଛନ୍ତି ଧାବିତ ।

ଦୂରେ ଚାଲିଯାଏ କେହି ଘେନିଣ ମନୁଷ୍ୟ,
ବହୁ ଦୂରେ ଯାଇ ଶେଷେ ହେଉଛନ୍ତି ଅଦୃଶ୍ୟ ।

ଝଟିକାବର୍ତ୍ତରେ ପଡ଼ି ଯାଉଛନ୍ତି କେ ବୁଡ଼ି,
ଧାଇଁଅଛି ଭିନ୍ନ ଦିଗେ କେହି ପଥ ଭୁଲି ।

ତରଙ୍ଗ ଆଘାତେ କେତେ ହୋଇ ଅର୍ଦ୍ଧଭଗ୍ନ
ହେଉଅଛି କଷ୍ଟେ ଆସି କୂଳରେ ସଲଗ୍ନ ।

ଆହତ ଆରୋହୀ କରେ କରୁଣେ ଚିତ୍କାର,
ଅଧୀରେ ହୃଦସ୍ଥ ଛଡ଼େ ଆର୍ତ୍ତ ହାହାକାର ।

କେହିବା ସଂଗ୍ରହି ରତ୍ନ ନବାସଦେ ଅଁଟେ,
ଆନନ୍ଦେ ସଫଳ ହାସ ବଦନେ ପ୍ରକାଶେ ।

ପାଖେ ପାଖେ କ୍ଷୁଦ୍ର ନାବ ବୁଲୁଅଛି କେତେ,
ତାହାର ଅପଦ ମାବ ହେଉ ନାହିଁ ଚେତେ ।

ପୂର୍ଣ୍ଣ କର ହୃଦର ସେ ହୀରକ ମଣ୍ଡନରେ
ଫେର ଅପୂଅଛି ଗରେ ତୁଷ୍ଟି ଲଭି ଖେଦେ ।

ତରତରଙ୍ଗିଲ ସିନ୍ଧୁ ନୁହେ କେବେ ସ୍ଥିର,
ବାରୀ ପରେ ବାରୀ ଆପେ ପିଟେ ତଟେ ଶିର ।

ଉଗାରେ ତରଙ୍ଗ ଫେନ ମସ୍ତକ ହଲାଇ,
ଫେନ ସହ ନିଜେ ଯଏ ମୁହୂର୍ତ୍ତେ ମିଳାଇ ।

ଉପବାରୀ ଦ୍ରାୟୁ ଭ୍ରମ ଭ୍ରମି ଭ୍ରମିଗଲେ
ଭସୂଛନ୍ତ ମହାପୁଚ୍ଛ ପଶ୍ଚାଲ କୁଣ୍ଡିଲେ ।

ସନ୍ତ୍ରୁ ସନ୍ତରୁ ଅତି ସାହସିକ ନରେ
ପଡ଼ିଛନ୍ତି ସେମାନଙ୍କ ଭୀଷଣ ଗ୍ରାସରେ ।

ନ ଦେଖି ଏ ଦୃଶ୍ୟ ଭୟେ ବୁଜିଲି ମୁଁ ଚକ୍ଷୁ,
ଉଠିଲା ସଘନେ ତତ୍ର ସ୍ପନ୍ଦନ ମୋ ବକ୍ଷୁ ।

ମୁହୂର୍ତ୍ତକ ପରେ ଚାହିଁ ହେଲି ମୁଁ ଚକିତ,
ଯାଇଅଛି ମାୟା-ସିନ୍ଧୁ ହୋଇ ଅନ୍ତର୍ହିତ ।

ସିନ୍ଧୁଗର୍ଭେ ଭାସୁଥିଲା ଯେଉଁଠାରେ ତରଣୀ,
ତହିଁ ଏବେ ଶ୍ରେଣୀ ଶ୍ରେଣୀ ବସିଛି ବିପଣୀ ।

ଜଗତର ପଣ୍ୟଦ୍ରବ୍ୟ ସବୁ ତହିଁ ଭରା,
ପୂର୍ଣ୍ଣ ସବୁ, ଖାଲି ନାହିଁ ଗୋଟିଏ ପସରା ।

ମାତ୍ର ଏହି ବଜାରର ଧାରା ବିପରୀତ,
ବିନା ଧନେ ପଣ୍ୟ ଏଥି ହୁଅଇ ବିକ୍ରୀତ ।

ଇଚ୍ଛାମତେ ଗରାଖେ ନେଉଛନ୍ତି ବହି,
କାହାରିକି କେହି କିଛି ଦେନ ନ କହି ।

ଅବରତ ନେଉଛନ୍ତି ବହୁ ଦ୍ରବ୍ୟମାନ,
ରଖିଲା ବେଳକୁ ପରେ ହେଉଅଛି ଆନ ।

କେହୁ ନେଇଥିଲା ସ୍ୱର୍ଣ୍ଣ, ହେଲା ସେ ପିତଳ,
କାହାର ମାଣିକ୍ୟ ରତ୍ନ ହେଲା ଗୁଞ୍ଜଫଳ ।

କେହୁ ନାରକେଳ ଭଙ୍ଗି ହୁଏ ବଡ଼ ଖପା,
ନାହିଁ ତା ଭିତରେ କିଛି ଖାଲି ତାହା ଫମ୍ପା ।

କାହାର ଅର୍ଜିତ ଧାନ୍ୟ ହୋଇଛି ଚାଉଳ,
ଅଦୃଷ୍ଟ ସମ୍ବଳ ଏକା ଅଦୃଷ୍ଟହିଁ ମୂଳ ।

ଅଭଲୋଭୀ ପୂରାଉଛି ଶସ୍ୟ ପୁଣି ପୁଣି,
ଯେତେ ପୂରାଇଲେ ମାପ ପୂରୁ ନାହିଁ ପୁଣି ।

ବହୁ ଯୁଗ ପୂର୍ଣ୍ଣ କରେ ଅଞ୍ଜଳି ଅଞ୍ଜଳି,
ତଥାପି ଅପୂର୍ଣ୍ଣ ତାର ବିଶ୍ୱଗ୍ରାସୀ ଥଳି ।

ଅବାରିତ ସେ ବଜାର୍, ସେଠାରେ ଅଭାବ—
ଦାରିଦ୍ର ତାରକ ମନ୍ତ୍ର ଦିଅ ଦିଅ ରବ ।

ଏତେ ପାଇ ତେବେ ସୁଦ୍ଧା ପୂରୁ ନାହିଁ ପେଟ,
ସନ୍ତୋଷ ସଙ୍ଗରେ କାର ହେଉ ନାହିଁ ଭେଟ ।

ପ୍ରାପ୍ତ ପ୍ରତାରିତ ହେବା ତହିଁ ବାରମ୍ବାର
କରୁଛନ୍ତି ଯାତାୟାତ ଅନେକ ଭିକାରୀ ।

ପ୍ରାପ୍ତି ପ୍ରତ୍ୟାଶାରୁ କେହି ନ ହୁଏ ନିବୃତ୍ତ,
ପିଅନ୍ତି ସଙ୍କଳ୍ପେ ସର୍ବେ ଆକାଙ୍କ୍ଷା-ଅମୃତ ।

ଭାଙ୍ଗୁ ନାହିଁ କେତେବେଳେ ବଜାରୁ ଗହଳି,
ମାତ୍ର ନାହିଁ କୋଳାହଳ କମ୍ବା ଦ୍ୱେଷ କଳି ।

ଶିଶୁ ଯୁବା ପ୍ରୌଢ଼ ବୃଦ୍ଧ ରୁଗ୍ଣ ତହିଁ ସର୍ବେ,
ବିଶେଷେ ଅଛନ୍ତି ସୁଦ୍ଧା ମୁମୂର୍ଷୁ ମାନବେ ।

ବେଢ଼ିଛନ୍ତି ଚତ୍‌ପାଶୁ ଦୋକାନେ ସର୍ବଦା,
ନବାଡଚକକୁ ଯଥା ବେଢ଼ିଥାନ୍ତି ଜନ୍ଦା ।

କମ୍ପା ଯଥା ବେଢ଼ିଥାନ୍ତି ଶବକୁ ଶାଗୁଣା,
ଲାଳସାରେ ନୁହେଁ କେହି କାହାରକ ଊଣା ।

ଅନନ୍ତର ତହୁଁ ଯାଇ ଅତ୍ୟଳ୍ପ ସମୟେ
ପ୍ରବେଶିଲ ଦେବୀ ସଙ୍ଗେ ଏକ ରଙ୍ଗାଳୟେ ।

ରାଣୀବେଶ ଧରି ତହିଁ ଅଭିନେତ୍ରୀ ଜଣେ
ଉପବିଷ୍ଟ ଅଭିମଞ୍ଚ ରତ୍ନ ସିଂହାସନେ ।

ଉଜ୍ଜ୍ୱଳ ଉଠୁଛି ମୁଖେ ଗୌରବ ଗରିମା,
ପ୍ରାଣବନ୍ତ ହୋଇଛି ବା କନକ ପ୍ରତିମା ।

ଅଦ୍ଭୁତ ମହାର୍ଘ ବସ୍ତ୍ରେ ଚାରୁ ଅବୟବ,
ଦିବ୍ୟ ଅଲଙ୍କାର ସୂତ୍ରେ ଅତୁଲ ବିଭବ ।

ଛିନ୍ନବସ୍ତ୍ରପରିହିତା ବୃଦ୍ଧା ନାରୀ ଏକ,
ଅସିଲା ପଦ୍ମିର ଧରି ଭିକାରୁଣୀ ବେଶ ।

ଧରିଛି ମୃଣ୍ମୟ କ୍ଷୁଦ୍ର ଭିକ୍ଷାପାତ୍ର ହାତେ,
କହିଲା ବିନମ୍ର ବାକ୍ୟେ ରାଣୀଙ୍କ ସାକ୍ଷାତେ ।

ଏ ଦୀନା ଅନାଥା ପ୍ରତି କରୁଣା ଅଚର
ହଅ ମାତଃ ଭିକ୍ଷା ଏହି ପାତ୍ର ପୂର୍ଣ୍ଣ କର ।

ରାଣୀଙ୍କ ଆଦେଶେ ତହୁଁ ମୂଲ୍ୟ ଗଣ
ଭିକ୍ଷା ଆଣି ପାତ୍ରେ ତାର କଲେକ ଅର୍ପଣ ।

ମାତ୍ର ନ ପୂରିଲା ପାତ୍ର ପୁଣି ଦେଲେ ତୂର୍ଣ୍ଣ,
ତଥାପି ସେ କ୍ଷୁଦ୍ରପାତ୍ର ନ ହୋଇଲା ସମ୍ପୂର୍ଣ୍ଣ ।

କହିଲା ସେ ଭିଖାରୁଣୀ ରାଣୀ ମୁଖ ଚାହିଁ,
ନ ପୂରିଲେ ମାତ୍ର ମୁହିଁ ଭିକ୍ଷା ନେବି ନାହିଁ ।

ଏଡ଼େ ବଡ଼ ରାଣୀ ହୋଇ ଥାଳଖଣ୍ଡି ମୋର
ନ ପାରବେ ପୂର୍ଣ୍ଣ କର, ଏ ତ ଲଜ୍ଜା ଘୋର ।

ପୂର୍ଣ୍ଣ କରବାକୁ ତହୁଁ ଆଦେଶିଲେ ରାଣୀ,
ବହୁ ଦ୍ରବ୍ୟ ଦେଲେ ଦାସୀ ଗନ୍ତାଘରୁ ଆଣି ।

ଦ୍ରବ୍ୟ ବହୁ ବହୁ ହେଲେ ହାଲିଆ ସର୍ବଥା,
ତେବେ ଅସମ୍ପୂର୍ଣ୍ଣ ପାତ୍ର, କି ଅଦ୍ଭୁତ କଥା !

ଥିଲା ଯେତେ ଧନ ଧାନ୍ୟ ସମଗ୍ର ନଗରେ,
ଦେଲେ ନାଗରଙ୍କେ ଆଣି ସବୁ ସେ ପାତ୍ରରେ ।

ତେବେ ସୁଦ୍ଧା ଅର୍ଦ୍ଧ ପୂର୍ଣ୍ଣ ନ ହେଲା ସେ ପାତ୍ର,
ବିସ୍ମୟରେ ହେଲେ ସର୍ବେ ଲୋମାଞ୍ଚତଗାତ୍ର ।

ଲାଗିଲା କି ଲୋକଙ୍କର କଳ୍ପନା ଜଳ୍ପନା,
ଇନ୍ଦ୍ରଜାଲ ବୋଲି ସର୍ବେ କଲେ ସମ୍ଭାବନା ।

ପରଶେଷେ ଦେଲେ ରାଣୀ ମୁଠେ ଭସ୍ମଧୂଳି,
ତହୁଁ ପାଦ ପୃଷ୍ଠ ହୋଇ ପଡ଼ିଲି ଉଛୁଳି ।

ପୂର୍ଣ୍ଣ ହେଲି ପୂର୍ଣ୍ଣ ହେଲି ବୋଲି ବୃଦ୍ଧା ନାରୀ
ଭିକ୍ଷାପାତ୍ର ଧରି ଗଲି ସଭ୍ୟର ବାହାରି ।

ଶେଷ ହେଲା ଅଭିନୟ ଗମିଲେ କେ କାହିଁ,
ଦେଖିଲି ମୁଁ ଦେବୀ ଭିନ୍ନ କେହି କେଉଁଠି ନାହିଁ ।

ପୁଚ୍ଛିଲି ଦେବୀଙ୍କି ବହୁ ପ୍ରକାଶି ବିନୟ,
କଏ ତୁମ୍ଭେ ଦିଅ ମୋତେ ଅମୃପରିଚୟ ।

ଯେ ଷଟିବ ଦୃଶ୍ୟରାଜି ଦେଖାଇଲ ମାତଃ,
ବୁଝି ନ ପାରିଲି ମୁହିଁ କିଛିହିଁ ତାହା ତ ।

କୃପା ବହି କହି ଦେବ, ତୁଟୁ ମୋ ସନ୍ଦେହ,
ପ୍ରକାଶ ମା ଦୀନ ପୁତ୍ର ପ୍ରତି ମାତୃସ୍ନେହ ।

ତହୁଁ ସେ ଅପରତତା ଭଣିଲେ ସସ୍ମିତେ,
ଶୁଣ ବତ୍ସ, ସତ୍ୟ ବଲ୍ଲ ଯାହା ଦୃଷ୍ଟଚରେ ।

ମୋହୋ ନାମ "ଆଶା", ମୋର ସର୍ବ ସଟେ ବାସ,
ସକଳ ମାନବେ ସଦା ମୋ ସମୃରେ ଦାସ ।

ଦେଖିଲୁ ଯେ ଦୃଶ୍ୟ ସେ ମୋ ମାୟା ଉପବନ,
ତୋତେ ଦେଖାଇବାପାଇଁ କଲ ତା ସୃଜନ ।

ଆବର ଦେଖିଲୁ ତୁହ ଯେବଣ ସାଗର,
ନୁହଇ ବାସ୍ତବ ତାହା, ଭ୍ରାନ୍ତ-ରତ୍ନାକର ।

ରମଣୀରୂପରେ ପରେ ଦେଖିଲୁ ତୁ ଯାହା,
ନରନେତ୍ର ଅଗୋଚର ଆଶାରାଜ୍ୟ ତାହା ।

ଧରଥିଲ ଭିଖାରୁଣୀ ରୂପେ ଯେଉଁ ଥାଳ,
ଅଶାଭଣ୍ଡ ତାହା ନାମ, ଶୂନ୍ୟ ଚିରକାଳ ।

ଯେତେ ଦେଲେ ନ ପୂରେ ତା ଉଦର ପ୍ରକାଣ୍ଡ,
ନୈରାଶ୍ୟ-ପାଷାଣେ ମାତ୍ର ପୂରି ଉଠେ ଭାଣ୍ଡ ।

ସୁଖ ପଥ ମୋର ସୁଦ୍ଧା ନାହିଁ ସମ୍ପୂର୍ଣ୍ଣତା,
ଅନନ୍ତେ ନିବାସ ମୋର ଅନନ୍ତ କ୍ଷମତା ।

ନାହାନ୍ତି ଯାହାର କେହି ମୁଁ ଏକା ତାହାର,
ଅନାଥବାନ୍ଧବୀ ମୁହିଁ କୃପାପାରାବାର ।

ଧରେ ଜନସେବା ବ୍ରତ ଅଖଣ୍ଡ ଅକ୍ଷୟ,
ଦୁଃଖୀ ବିପନ୍ନର ମୁହିଁ ଏକାନ୍ତ ଆଶ୍ରୟ ।

ନ ଡାକଇ କେହି ମୋତେ ନ ଦିଏ ସମ୍ପଦ,
ଚଳେ ଚଳେ ସେବେ ମୁହିଁ ସମସ୍ତଙ୍କ ପଦ ।

ତଡ଼ିଦେଲେ ସୁଦ୍ଧା ମୋର ନାହିଁ ଅପମାନ,
କାର୍ଯ୍ୟ ମୋର ପ୍ରାଣପ୍ରିୟ, ଅପ୍ରିୟ ସମ୍ମାନ ।

କର ପାରେଁ ନମେଷେ ମୁଁ ନିଷ୍ଠୁରକୁ ପୂଜା,
କର ପାରେଁ ଅବହେଳେ ବାନପ୍ରଷ୍ଟେ ଗୃହୀ ।

ସମଦର୍ଶୀ ମୁଁ, ନ ଗଣେ ଇତର ବିଶେଷ,
ଦୟାଦାନେ ନ କରେଁ ମୁଁ କୃପଣତା ଲେଶ ।

ବ୍ୟଥା ବେଦନାଦ ସଦା ହରେଁ ମାନବର,
ନସ୍ତରଙ୍ଗ ମୋ ବନା ତା ହୃଦୟ-ସାଗର ।

ସଂସାରେ ଶୃଙ୍ଖଳାବଦ୍ଧ ଅଟେ ମୋର କାର୍ଯ୍ୟ,
ମୋ ବନା ସଂସାର ହେବ ବୈରାଗ୍ୟର ରାଜ୍ୟ ।

ପୋଛେଦଏଁ ଅଶ୍ରୁ ମୁହିଁ ଶୋକାତୁର ନେତ୍ର,
ତଡ଼ଦେଇ ବର୍ତ୍ତମାନେ ତା ହୃଦୟ-କ୍ଷେତ୍ର ।

କଳ୍ପନାର ସୁଖମୟ ଭବଷ୍ୟତେ ଆଣି
ଖେଳାଏଁ ତା ହୃଦେ, କେହ ନ ପାରନ୍ତି ଜାଣି ।

ସ୍ୱପ୍ନ-ସଖୀ ନିଦ୍ରାକାଳେ କରେ ଵାଳପଣ,
ମାତ୍ର ମୁଁ ଦେଖାଏଁ ଧନେ ଜାଗ୍ରତ ସ୍ୱପନ ।

ମୋ ମାୟାରେ ଗାଏ ନର ପାପଙ୍କ-ସଙ୍ଗୀତ,
ମୋହୋଯୋଗୁଁ ହୁଏ ଗୁଣୀ ଅମୃତ୍ରତାରତ ।

ଵାହନ କର ସେ ମୋତେ ଖେଳେ ସୁଖେ ଭୁଲି,
ଯାହାପାଇଁ ଅପିଅଛୁ ଯାଏ ତାହା ଭୁଲି ।

ଅନ୍ତିମ ନିଃଶ୍ୱାସ ନର ନ ତେଜିବାଯାଏଁ,
କ୍ଷେତେବେଳେ ତାହା ପ୍ରାଣ ଛାଡ଼ି ମୁଁ ନ ଯାଏଁ ।

ମୁମୂର୍ଷୁର ପ୍ରାଣେ କରେଁ ମଧୁର କୌତୁକ,
ହେଉ ପଛେ ଭ୍ରାନ୍ତ ତାହା କଥା ଅହେତୁକ ।

ଭାବେ ସେ, "ମୁଁ ବୈଦ୍ୟ ଡାକ ମହୌଷଧି ସେବ
ଭୁଇ ଗୃର ଦନ ମଧ୍ୟେ ନିରାମୟ ହେବ ।

ଯେ ଉପାୟେ ହେଉ ଶସ୍ତେ କରବ ଚାକର,
ସୁଖରେ କାଟିବ ଦିନ ବାହୁଡବ ଶେଷ ।

ସମ୍ପତ୍ତି ଅଧିକ ହେଲେ ଛାଡ ଦେଇ ତାହା
ଧରବ ଚେଷ୍ଟିକା ଅନ କେମୋନ୍ଧ ବାହା ।

ଚାକର ତ ଦାସତ୍ୱର ନିଗଡ଼ ଶୃଙ୍ଖଳ,
ନ ଭଙ୍ଗିଲେ ବଳେ ତାହା କାହିଁ ତୁ ମଙ୍ଗଳ ।

ଚାକର ପଦ୍ମରେ ଦେଇ ଜୀବନକୁ ବିକ
ହରାନ୍ତି ନିଜସ୍ୱ ଜନେ କେଜାଣି କାହିଁକ ?

ବୃଥା ନମ୍ର ହୁଏ ତହିଁ ମନୀଷା ପ୍ରତିଭା,
ଭକେ ମଳନତା ପୁଣି ଶକ୍ତି-ବହ୍ନି-ବିଭା ।

ଦେହ ମନ ଆତ୍ମା ତହିଁ ନ ଲଭେ ବିକାଶ,
ପୌରୁଷ ଅଧିବସାୟ କରେ ଯେ ବିନାଶ ।

ଗୃକରଣ କେନ୍ଦ୍ର କର ନର୍ଦ୍ଦିଷ୍ଟ ସୀମାରେ
ଘୃରେ ଅଜୀବନ ନର ନ ଉତ୍କଣ୍ଠି ଗାରେ ।

ଦାସତ୍ୱର ପଦରଜେ କାଟି ଶିରେ ଚଢା,
ବାଢେ ଯେ ବଢ଼ାଇ ତାର ପ୍ରକୃତ ଘୃଣିତା ।

ଶଣ୍ଢ କର୍ମକ୍ଷେତ୍ର ଅଗ୍ରେ ରହୁଛନ୍ତି ବସ୍ତୃତ,
ଅନନ୍ତ ମାଣିକ୍ୟ ରତ୍ନେ ହୋଇ ଅଲଙ୍କୃତ ।

ନ କର ସଂଗ୍ରହ ତାହା, ଦାସତ୍ୱେ ଆନନ୍ଦ
ଯେ ସ୍ଥଳେ ସେ ଅଚତୁର ଚକ୍ଷୁ ସତ୍ତ୍ୱେ ଅନ୍ଧ ।

ଶଣ୍ଢର ଗୋଟିଏ ରେଣୁ କୋଟି ମୁକ୍ତା ସମ,
ବ୍ୟକ୍ତେ ତାହା ସଂରକ୍ଷି ଲଭେ ଶଦ୍ୟା ସମ ।

ଧନ-ଭୃତ୍ୟଠାରୁ ସୁଖୀ ସ୍ୱାବଲମ୍ବି-ଦୀନ,
ସ୍ୱାବଲମ୍ବେ ଦୀପ୍ତ ହୁଏ ପ୍ରାଣ ଅନୁଦିନ ।

ଧରି ମୁହିଁ ସଦା ଅମ୍ଳ-ନର୍ଭରତା ଦୀକ୍ଷା
କରିବି ଜୀବନ-ଯୁଦ୍ଧେ ପ୍ରବଳ ପରୀକ୍ଷା ।

ଯଥାଶକ୍ତି ସାଧିବି ପରହିତ ବ୍ରତ,
ସତ୍କର୍ମରେ କାୟ ମନ ଅର୍ପିବି ସତତ ।

ଦୁଃଖୀ ନେତ୍ରୁ ପୋଛି ଦେଇ ତପ୍ତ ଅଶ୍ରୁଧାର,
କରିବି ସବଳ ହସ୍ତ, ହରିବି ତା ଭାର ।

କରିବି ମୁଁ ରୋଗୀ ସେବା ନ ବହିଣ ଘୃଣା,
ସେ ମୂଲ୍ୟେ କଣିବି ଦାତେ॰ ପ୍ରଭୁଙ୍କ କରୁଣା ।

ସ୍ୱଦେଶ ସେବାରେ ଶକ୍ତି କରିବି ମୁଁ ଯତ୍ନ,
ସମାଜର ହିତ ମୋର ହେଉ ମୁଖ୍ୟ ଲକ୍ଷ୍ୟ ।

---

॰ ଅତକ୍ଷଣରେ ।

ମାତୃମହୀ ଶତ ସ୍ୱର୍ଗୁଁ ବଳି ଗୌରବମୟୀ,
ଶତ ଗଙ୍ଗାଠାରୁ ଶ୍ରେଷ୍ଠ ସ୍ୱଦେଶ ମୃତ୍ତିକା।

ଦେଶ-ସେବା-ପୁଣ୍ୟ-ଯଜ୍ଞେ ନ ଲାଗେ ଯେ ହାତ,
ହାତ ନୁହେ—ଅର୍ଦ୍ଧଦଗ୍ଧ ଅଙ୍ଗାର ତାହା ତ।

ଲାଗେ ନାହିଁ ଯେଉଁ ଧନ ଦେଶ ଉପକାରେ,
ଶ୍ମଶାନ ଭସ୍ମ ସେ ଲାଗେ ନାହିଁ ବ୍ୟବହାରେ।

ଜୀବନ ଶରୀର ଧନ ନଶ୍ୱର ସର୍ବଥା,
ରହେ ନାହିଁ କିଛି, ଖାଲି ରହିଯାଏ କଥା।

ବିଜୁଳି ଝକାଶ ପ୍ରାୟ ସୁଖ ତ ସ୍ୱଳ୍ପାୟୁ,
ମହାଶୂନ୍ୟେ ମିଶିଯିବ ଦିନେ ପ୍ରାଣବାୟୁ।

ଯିବାବେଳେ ନିଜ ଦେହ ସଙ୍ଗେ ଯିବ ନାହିଁ,
ଆତ୍ମୀୟ ସ୍ୱଜନେ ସର୍ବେ ରହିବେ କେ କାହିଁ।

ଏକମାତ୍ର ଶେଷ ସଙ୍ଗୀ ଧର୍ମ ଏ ସଂସାରେ,
ସେହି ଏକା ଆଶା-ଦୀପ ଘୋର ନିରାଶାରେ ।

ଦୁଃଖେ ଶୋକେ ମାନବର ଧର୍ମ ଏକା ସାହା,
ଅଜ୍ଞାତ ରାଜ୍ୟର ଶେଷେ ଦେଖାଏ ସେ ରାହା ।

ଧର୍ମରେ ଚଳୁଛି ସୃଷ୍ଟି, ସତ୍ୟ ଧର୍ମ ଜାତ,
ଧର୍ମେ ଚନ୍ଦ୍ର ସୂର୍ଯ୍ୟ ହୁଏ ନଭେ ଅତଯାତ ।

ପ୍ରାଣପଣେ ଧର୍ମପଦେ ଆଶ୍ରା ଯେ କରନ୍ତି,
ସଂସାରେ ବିପଦ ଭୀତି ନାହିଁ ତାର କିଛି ।

ଭବ-ସାଗରର ଧର୍ମ ପ୍ରଚଣ୍ଡ ତରଣୀ,
ପ୍ରକୃତ ଧନୀ ସେ, ଯେହୁ ଧର୍ମ-ଧନେ ଧନୀ ।

ଚିର ହାହାମୟ ପ୍ରାଣେ ଧର୍ମହିଁ ସାନ୍ତ୍ୱନା,
ଧର୍ମ ବିନା ମାନବର ପ୍ରାଣ ବିଡ଼ମ୍ବନା ।

ଯାତନା-ବିଦଗ୍ଧ ହୃଦେ ଧର୍ମ ଶାନ୍ତିବାରି,
କରିଦିଏ ଧର୍ମ ତପ୍ତ ବୈତରଣୀ ପାରି ।

ସାଧିବ ପାର୍ଥିବ କାର୍ଯ୍ୟ ଧର୍ମେ ଅର୍ପି ମନ,
କ୍ଷେପିବ ଆନନ୍ଦେ ମୁହିଁ ପଶ୍ଚିମ ଜୀବନ ।''

ଅନ୍ତିମ ଶଯ୍ୟାରେ ଶୋଇ ମୁମୂର୍ଷୁ ଏସନ
ମନେ ମନେ ଆଶା-ବନ୍ଧ ବାନ୍ଧେ ଅଗଣନ ।

କେତେ ମୁଁ କହିବି ଆଉ ନଶ୍ୱର ମହିମା,
କାଳେ କାଳେ ବର୍ଣ୍ଣିଥିଲେ ନ ମିଳିବ ସୀମା ।

ଭବ-ଅନ୍ଧକୂପେ ନର ଘୂରେ ଅବିରତ,
ହାତ ଧରି ମୁହିଁ ତାକୁ ଦେଖାଉଛି ପଥ ।

ମୋତେ ଆଶା କରି ବସି ଥିଲେ ଚିନ୍ତା ତାପ,
କର୍ମକ୍ଷେତ୍ରେ କର୍ମ ଧର୍ମ, କର୍ମତ୍ୟାଗ ପାପ ।

ଏହା ଭଣି ଅଶାଦେବୀ ହେଲେ ଅନ୍ତର୍ହିତ,
ଛୁଟିଗଲା ସ୍ୱପ୍ନ, ହେଲି ଶଯ୍ୟାରୁ ଉତ୍ଥିତ ।

ଯାଉ ସ୍ୱପ୍ନ କଥା, ଆଶା ଜାଗ୍ରତରେ ସୁଦ୍ଧା
ପିଆଉଛୁ କେତେ ଆଣି ବିଷମିଶା ସୁଧା ।

କହୁଛୁ ନୀରବେ କାନେ ଉଦ୍ଦୀପନା ଭାଷା,
ମାଏ କାହିଁ ତୃପ୍ତ ନୁହେ ମୋ ପ୍ରାଣପିପାସା ।

ଶୁଣି ଶୁଣି ଅଶା ମୁଖୁଁ ଭୁଲୁଣିଅ କଥା
ଅବସାଦେ କଣ୍ଠ ବେନ ଭଜଲଣି ବ୍ୟଥା ।

ଭାବିଲେ ନବସ୍ଫୁଟିତେ ଅଶାର ରହସ୍ୟ
କେତେବେଳେ କାନ୍ଦେ ମାଢ଼େ କେବେ ମାଢ଼େ ହସ!

